# ବିଭିନ୍ନ ବାର୍ଣ୍ଣିକ ଛନ୍ଦରେ:-

## ଅବଦାନ 050

**ଅମ୍ଭୋଧି ବାଣ୍ଟେ ମଣି ରତ୍ନ ମୁକ୍ତା**
**ଭୂଭୃତ୍ ଦିଏ ନୀର ନଦୀର ଗର୍ଭେ ।**
**ଶାଖୀ ଦିଏ ଖାଦ୍ୟ ବିଶୁଦ୍ଧ ବାୟୁ**
**ପ୍ରାଣୀ ଦିଏ ମା ପୃଥିବୀକୁ ବିଷ୍ଠା ।**

**ଅମ୍ଭୋଧି= ସମୁଦ୍ର; ଭୂଭୃତ୍= ପର୍ବତ;**
**ଶାଖୀ= ଗଛ,;**

**ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)**

**221/221/121+22**
**by LKabi 202501210121**

## ଦୂରତା 049

 କେବେ ଦୁର୍ବଚନ ପ୍ରୟୋ ନ କରେ
ହାସ୍ୟେ ବି ଦୁଃଖପ୍ରଦ
ଅନ୍ୟା କେ ଲଳନା ସହ ପ୍ରହସନେ
ଶଂସାପ୍ରଲିପ୍ତା କଥା ।
ତୋ ଚିନ୍ତା କରି ମଗ୍ନ ମୋ ମନ ରହେ
ସଶ୍ରଦ୍ଧ ତୋ ସମ୍ମଦ
ତେଜି କ୍ରୋଧ ବତା କି କାରଣ ଦିଶେ
ମୋଠାରୁ ତୋ ଦୂରତା ।

ହାସ୍ୟ, ପ୍ରହସନ= ହସମଜା; ଶଂସାପ୍ରଲିପ୍ତ= ତେଲବୋଳା; ତୋ ସମ୍ମଦ= ତୋ ପ୍ରତି ହର୍ଷିତ;

ଛନ୍ଦ: ଶାର୍ଦ୍ଦୂଳ ବିକ୍ରୀଡିତମ୍ (ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
ମସ ଜ ସ ତ ତ +ଗୁ
**222/1121/121/112••221/221+2**
**by L Kabi 202501211121**

## ଜୟଯାତ୍ରା 048

ବିଶ୍ଳେଷଣେ ରହୁ ସମୁଜ୍ଜ୍ୱଳ ତୋର ଚତ୍ତ
ଆଦର୍ଶରେ ଅବିଚଳ ସ୍ଥିତି ହେଉ ତୋର ।
ଔଦାର୍ଯ୍ୟ ନିତ୍ୟ ରହୁ ପଥ୍ୟ ବିପଥ୍ୟ ଲାଭେ
ହେମନ୍ତ କୁହୁଡି ସମା ସିତଘୋଷଯାତ୍ରା ॥

ପଥ୍ୟ= ସାମିଳାନ୍ୟ; ବିପଥ୍ୟ= ଅସାମାନ୍ୟ; ସିତ= ସରଳ;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by L. Kabi 202501202020

## କମନୀୟମୁଦ୍ରା 047

ଆହା କି ସୁନ୍ଦର ଦିଶେ ଯୁଗଳଙ୍କ ମୁଦ୍ରା
ସ୍ୱର୍ଗୀୟ ବନ୍ଧନର ଏ ମିଳନ ପ୍ରତିଜ୍ଞା ।
ଅତ୍ୟନ୍ତ କାଳ ଭିତରେ ଥିବ ସେ ଶରୀରେ
କଙ୍କାଳ ମାତ୍ର ଚଳିଲେ ତନୁ ବର୍ଜି ଦେହୀ ॥

ମୁଦ୍ରା= ଭଙ୍ଗୀ; ତନୁ= ଦେହ; ଦେହୀ= ଆତ୍ମା;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by L. Kabi 202501202020

## ରାଜବଂଶ 046

ପୀଠେ ମଠେ ବିକଟ କର୍ବଟ-ବାଟ-ଘାଟେ
ଯେତେ ଅଛନ୍ତି ବସି ଯାଚନପାତ୍ରଧାରୀ ।
ସେ ମଧ୍ୟରେ ଥିବ ତ କେ ନର ଭାଗ୍ୟଦୋଷେ
ଯା ପୂର୍ବଜେ ଥିବ କିଏ ଶ୍ରୁତ ଦଣ୍ଡଧାରୀ ॥

ବିକଟ= ଯାହାର କଟ(ସପ, ମସିଣା) ନାହିଁ; ଯାଚନପାତ୍ର= ଭିକ୍ଷାପାତ୍ର; କର୍ବଟ= ସହର ବଜାର, ଗ୍ରାମ; ଶ୍ରୁତ= ଖ୍ୟାତ; ଦଣ୍ଡଧାରୀ= ରାଜା;

ଛନ୍ଦ ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22

by L. Kabi 202501201220

## ଗାଈର ଦୁଃଖ 045

ସର୍ବେ ଲଭନ୍ତୁ ସାଥୀ ବିଚାରି ଈଶ୍ୱର ରଖେ ସକଳଜୀବେ ।
ସଂଖ୍ୟା ସମାନ ମାଈ- ବୃଷଙ୍କୁ ତା ସୃଷ୍ଟିର ପ୍ରତିଟି ଜୀବେ ॥ 1
ହେଲେ ମନୁଷ୍ୟ କି ଧୂର୍ତ୍ତ ଗାଈ ମାତା କହେ ଛଳ କରି ସିନା ।
ଅଣ୍ଡୀରକୁ ଖାସୁ କରେ, ଗାଈ ସାଥୀ ହରା ହୁଏ ଫଳତଃ ॥ 2

ଛନ୍ଦ: ଗୀତି (ଆର୍ଯ୍ୟାବିଶେଷ) (ଅ.ସ ମା.)
by Lalatendu Kabi

*ଗଣବିଭାଜନ (ଛନ୍ଦଃଶିକ୍ଷିର୍ଥୀଙ୍କ ନିମନ୍ତେ:-*

ସର୍ବେ / ଲଭନ୍ତୁ / ସାଥୀ /
ବିଚାରି / ଈଶ୍ୱର /ରଖେ ସ/କଳଜୀ/ବେ ।
ସଂଖ୍ୟା / ସମାନ / ମାଈ /
ବୃଷଙ୍କୁ/ ତା ସୃ/ଷ୍ଟିର ପ୍ର/ତିଟି ଜୀ/ବେ ॥
ହେଲେ / ମନୁଷ୍ୟ / କି ଧୂର୍ତ୍ତ /
ଗାଈ /ମାତା/ କହେ ଛ/ଳ କରି ସି/ନା ।
ଅଣ୍ଡୀ/ରକୁ ଖା/ସୁ କରେ /
ଗାଈ/ ସାଥୀ /ହରା ହୁ/ଏ ଫଳ/ତଃ ॥

ଛନ୍ଦ: ଗୀତି-ଆର୍ଯ୍ୟା (ଅ.ସ ମା.)
by Lalatendu Kabi

## ପ୍ରେମମୁଦ୍ରା 044

ପ୍ରେମପ୍ରସଙ୍ଗେ କରି ଅଙ୍ଗ ମୁଦ୍ରା
ହେମ ତ୍ରିଭଙ୍ଗେ ବୁଡି ରଙ୍ଗରାସେ ।
ଯେବେ ଅକସ୍ମାତ୍ ଗଲ ଯୋଗନିଦ୍ରା
ନିଃସଙ୍ଗ ସନ୍ଧ୍ୟା କଟିଲା ଉଦାସେ ॥ 1

ଏ ପ୍ରେମପକ୍ଷୀ ବନବୃକ୍ଷ ଡାଳେ
ଶୋକାର୍ତ୍ତଚିତ୍ତେ ସ୍ମୃତିଗୀତ ଗାଏ ।
ସେ ବୃକ୍ଷମାଳେ ବୁଲି ଦେଖ ବାରେ
ବକ୍ଷେ ଯଦି ପ୍ରେମର ଚିହ୍ନ ଥାଏ ॥ 2

ସେ ଶୈଳରାଣିଙ୍କର ବେଷ୍ଟନୀରେ
ସେ ଶ୍ୟାମ ଶଷ୍ପାଞ୍ଚଳ ମଧଭାଗେ ।
ଅଦ୍ୟାପି ଯେ ପ୍ରେମର ଆମ ସାକ୍ଷୀ
ସେ ଚଞ୍ଚରୀ ଚର୍ଚ୍ଚିତ ରଙ୍ଗରାଗେ ॥ 3

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22

by L Kabi 202501171835

## ପାଲଟା-ବୃକ୍ଷ-ଶାଖା 043

ତରୁବର ଉପବୃତ୍ତ ପ୍ରାୟ ସଂସାର ସଜ୍ଜା
ଉପରଦିଗକୁ ଥାଏ ଐକ୍ୟ, ନିମ୍ନେ ପ୍ରପଞ୍ଚ ।
ପୁରୁଷ କରୁଛି ଲୀଳା ପକ୍ଷିତୁଲ୍ୟ ପ୍ରଶାଖେ
ଉଡୁଛି ବହୁତ ଦୂରେ ପଞ୍ଜରେ ନ ପ୍ରବେଶେ ॥

ଉପବୃତ୍ତ ତରୁବର= ଓଲଟା ବୃକ୍ଷ; ପ୍ରପଞ୍ଚ= ବୈବିଧ; ପୁରୁଷ= ଜୀବାତ୍ମା; ଲୀଳା= ଖେଳ;

ଛନ୍ଦ: ମାଳିନୀ (ନନମୟୟ)
111/111/22•2/122/122

by L Kabi 202501172047

## ଅପତର୍କ 042

ବିକ୍ଷିପ୍ତ ଭାବେ ରଚି  ଶାସ୍ତ୍ରଲେଖା
ଗୂଢାର୍ଥ ମଧ୍ୟେ ନ କରି ପ୍ରବେଶ ।
ଉଦ୍ଧାର ତର୍କେ କରିଥିନ୍ତି ବାଣୀ
ସେ ଶାସ୍ତ୍ରସନ୍ତାପନପାପଭାଗୀ ॥

ସନ୍ତାପନ= ଉତ୍ପୀଢନ;

ଛନ୍ଦ:  ଇନ୍ଦ୍ରବଜ୍ରା  (ତୌ ଜଗୌ ଗଃ)
221/221/121+22

by  L Kabi  202501171647

## ଶାସ୍ତ୍ରଘୋଷା 041

ହିଂସା  ଘୃଣା ଦ୍ୱେଷଠୁ ନିତ୍ୟ ଦୂରେ
ସ୍ୱାଧ୍ୟାୟ ସେବା ବ୍ରତ ସର୍ବଜୀବେ ।
ସେ ସଜ୍ଜନ ଜ୍ଞାନିଜନେ ସୁମାନ୍ୟ
ଅଜ୍ଞାନ ଯେ କେବଳ ପାଠ ଘୋଷେ ॥

ଛନ୍ଦ:  ଇନ୍ଦ୍ରବଜ୍ରା  (ତୌ ଜଗୌ ଗଃ)
221/221/121+22

by  L Kabi  202501171701

## ମୋହିନୀ ନାୟିକା 040

ଅଚିହ୍ନା ନିଶାନ୍ତେ ସାଜିଲ ପ୍ରେମିକା
ମିଠା ପ୍ରଶ୍ନଭାରେ ମୋହିନୀ ନାୟିକା ।
ପଥେ ପାନ୍ଥଶାଳେ ମୂର୍ଚ୍ଛନା ଶାଳିକା
କିଏ ପ୍ରଶ୍ନକନ୍ୟା ସ୍ୱପ୍ନରା ବାଳିକା ॥ 1

ଅତି କ୍ଲାନ୍ତି ଶେଷେ ଶର୍ୱରୀସଞ୍ଚନେ
ତୁମେ କେ ଦ୍ୟୁବାଳା ଉତ୍ଖଳା ସିଞ୍ଚନେ ।
ପରିଶ୍ରାନ୍ତି କାଳେ ହେଲ ମୋ ମାନସୀ
ନିରାଶା-ମରୁପ୍ରଷ୍ଠେ ବୃଥା ସାରସୀ ॥ 2

କ୍ଷଣେ ଅନ୍ତରେ ହେଲେ ପ୍ରଭା ଭୂତଳେ
ଯିବା ସତ୍ୟ ମୋ ଅଜ୍ଞାତ ଲକ୍ଷ୍ୟସ୍ଥଳେ ।
ତୁମେ ମୋର ସଙ୍ଗେ ସାଜି ମୋ ବନ୍ଦିନୀ
ସତେ ହେବ ସାଥୀ ପଲ୍ଲିକା ନନ୍ଦିନି ॥ 3

**ନିଶାନ୍ତ=** ବସତି; **ଶାଳିକା=** ବଂଶୀ, ହାଟ, ପ୍ରକୋଷ୍ଠ; **ସ୍ରଗ୍ଧର=** ଯେ ମାଳା (ସ୍ରକ୍) ଧାରଣ କରିଥାଏ, ***ସ୍ତ୍ରୀ.*** **ସ୍ରଗ୍ଧରା;** **ଶର୍ୱରୀ=** ରାତ୍ରି; **ଦ୍ୟୁବାଳା=** ସ୍ୱର୍ଗକନ୍ୟା; **ଉତ୍ଖଳା=** ଅତରବିଶେଷ; **ନନ୍ଦିନୀ=** ଝିଅ, ***ସମ୍ବୋଧନେ.*** ନିନ୍ଦିନି;

ଛନ୍ଦ: ସରୋଜାବଳୀ (ୟୟରର)
122/122/212/212
by L Kabi 202501270517

## ଭାରତ 039

ଯେଉଁ ଦେଶେ ଝରେ ସିନ୍ଧୁ ଗଙ୍ଗା ନଦୀ
ମସ୍ତକେ ପର୍ବତ ଶ୍ରୀପଦେ ତୋୟଧି ।
ତାପ୍ତି ଗୋଦାବରୀ ନର୍ମଦା କ୍ଷାଳିତ
ଭୂତଳେ ଭାତ ସମ୍ପୂଜ୍ୟ ମୋ ଭାରତ ॥ 1

ଅଙ୍କ-ବିଜ୍ଞାନ-ଭୂଗୋଳ-ରୁଗ୍‌ଭେଷଜ-
ଦର୍ଶନ-ଐବ୍ରହ୍ମତତ୍ତ୍ୱେ ଭରା ଦିଗ୍ଗଜ ।
ସର୍ବଥା ଭ୍ରାତୃଭାବେ ସଦା ଫୁଲ୍ଲିତ
ଭୂତଳେ ଭାତ ସମ୍ପୂଜ୍ୟ ମୋ ଭାରତ ॥ 2

ଧର୍ମ ବା ସମ୍ପ୍ରଦାୟେ କି ଭାଷାଭିଦା
ଯୋଗୁ ସର୍ଜେ ଅସୂୟା ଯିଏ ସର୍ବଦା
ହେଉ ନେତା କି ସେ ଥାଉ ବା ଭୂଭୃତ
ହେବ ସେ ଶୀଘ୍ର ମୋ ଭାରତେ ଦଣ୍ଡିତ ॥ 3

ତୋୟଧି= ସମୁଦ୍ର; ରୁଗ୍‌ଭେଷଜ= ଔଷଧଶାସ୍ତ୍ର;
ଦିଗ୍ଗଜ= ପଣ୍ଡିତ; ଭିଦା= ଭେଦ; ଅସୂୟା= ଘୃଣା;
ଭୂଭୃତ= ରାଜା;

ଛନ୍ଦ: ସ୍ରଗ୍ବିଣୀ (ରଶ୍ଚତୁର୍ଭିର୍ଯୁତା)
212/212/212/212
by L Kabi 20250116 2116

## ଆସ ବର୍ଷା 038

ଆସ ବର୍ଷା ଧରାପୃଷ୍ଠ ରୌଦ୍ରେ ଜଳେ
ବୃକ୍ଷଶାଖା ଲତା ଗୁଳ୍ମ ଦାବାନଳେ ।
କୀଟ ଝିଲ୍ଲୀକ ମଣ୍ଡୂକ ଦଂଷ୍ଟ୍ରୀ ନରେ
ଜନ୍ତୁ ପକ୍ଷୀକୁଳେ ଆତପେ କାତରେ । 1

ଦାବ= ବନ; ଝିଲ୍ଲୀକ= ଝିଣ୍ଟିକାଦି; ଦଂଷ୍ଟ୍ରୀ= ସାପ;

ଢାଳି ଯା ଦିବ୍ୟତା ଯା ମିଳେ ପୁଷ୍କରେ
ପୂର୍ଣ୍ଣତା ଆସୁ ଏ ପୁଷ୍କରେ ପୁଷ୍କରେ ।
ରମ୍ୟତା ବର୍ଷୁ ରତ୍ନପ୍ରଭା ଅଙ୍ଗନେ
ପ୍ରାଣଧାରୀ ଜନେ ଥାନ୍ତୁ ଆନନ୍ଦନେ । 2

ପୁଷ୍କର= (କ୍ରମଶଃ) ସ୍ୱର୍ଗ ପୁଷ୍କରିଣୀ ଜଳ; ରତ୍ନପ୍ରଭା= ପୃଥିବୀ;

ତୁମ୍ଭ ଅଭ୍ୟାଗମେ ହର୍ଷିତା ବାସୁରା
ହର୍ଷୁଳା ଔସଷୀ ତାମସୀ ମସ୍ୱରା
ହର୍ଷିତା ଶ୍ୟାମଳା ମୃତ୍ତିକା ମସ୍ୱରା
ବର୍ହିଣେ ବର୍ହିଣୀ ବାରଣେ ବାସୁରା । 3

ବାସୁରା= ପୃଥିବୀ; ହର୍ଷୁଳା= ଆନନ୍ଦିତା; ଔସଷୀ= ଉଷା; ତାମସୀ= ରାତ୍ରି; ମସ୍ୱରା= ଆନନ୍ଦିତା; ମୃତ୍ତିକା= ପୃଥିବୀ, ମାଟି; ମସ୍ୱରା= ମଶାମାଛି; ବର୍ହିଣୀ= ମୟୂରୀ; ବାସୁରା= ହସ୍ତିନୀ; ବର୍ହିଣୀ ବର୍ହିଣେ, ବାରଣେ ବାସୁରା= ମୟୂରୀ ମୟୂର ପାଖରେ, ହାତୀ ପାଖରେ ହସ୍ତିନୀ;

ଛନ୍ଦ: ସ୍ରଗ୍ବିଣୀ (ରଶ୍ଚତୁର୍ଭିର୍ଯୁତା ସ୍ରଗ୍ବିଣୀ ସମ୍ମତା)
212/212/212/212
by LKabi 202305251615

## ଯୋଜନୀ ବା ଷ୍ଟେପ୍ଲର୍                037

**ବନ୍ଧୁତା ରକ୍ଷିତା ଯୋଜନୀ ଯୋଜନେ**
**ଜାଲସଂଳାପ ବାର୍ତ୍ତା ହିଁ ତା ସୂଚିକା**
**ଭିନ୍ନ ପୃଷ୍ଠା ଯଥା ମୁକ୍ତ ତା ଛେଦନେ**
**ପତ୍ର ବାର୍ତ୍ତା ଚଳା ସେହି ତୋ ଭୂମିକା ।**

**୧- ବନ୍ଧୁତା ରହିଛି ଷ୍ଟେପ୍ଲର୍ ଯୋଡେଇରେ; ୨- ନେଟ୍ ଚାଟିଂ, ବାର୍ତ୍ତାଳାପ ତା କଣ୍ଟା ବା ପିନ୍; ୩- ପିନ୍ ଭାଙ୍ଗିଲେ ପୃଷ୍ଠା ପରି ବନ୍ଧୁତା ଅଲଗେଇ ଯିବ;୪- (ତେଣୁ) ତୁ ଚାଟ, କଲ୍ କରୁ ଥା, ଏଇ ତୋ ଡ୍ୟୁଟୀ;**

**ଛନ୍ଦଛନ୍ଦ:** **ସ୍ରଗ୍ଵିଣୀ** **(ରଶ୍ଚତୁର୍ଭିର୍ଯୁତା ସ୍ରଗ୍ଵିଣୀ ସମ୍ମତା)**
**212/212/212/212**
**by LKabi 202208231950**

## ସଂସାର                036

ସଂସାର ଭାର୍ଯ୍ୟା ପତି ପୁତ୍ର କନ୍ୟା
ଆତ୍ମୀୟବର୍ଗେ ଯଦି ସର୍ବମିଥ୍ୟା ।
ତେବେ ମୁଁ କାହା ସୁତ ବୋଲି ମିଥ୍ୟା
ମୋତେ ତୁମ ଜ୍ଞାନ ଦିଆ ବି ମିଥ୍ୟା ॥

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
**221/221/121+22**
**by L Kabi 202501152215**

## ଜଳ୍ପ                035

ପୂରିତା କୁଣ୍ଡିକା ଶବ୍ଦହୀନା ସ୍ଥିରା
ଅର୍ଦ୍ଧପୂର୍ଣ୍ଣା ରହେ ଭୂରି ଶବ୍ଦେ ଭରା ।
ଜ୍ଞାନବାନ୍ ସ୍ଵଳ୍ପଭାଷୀ ବରେ ମୌନତା
ମୂଢ ଜଳ୍ପେ ନ ଜାଣେ ନିଜ ନ୍ୟୂନତା ॥

ଜନ୍ଦ: ସ୍ରଗ୍ଵିଣୀ (ରଶ୍ଚତୁର୍ଭିର୍ଯୁତା ସ୍ରଗ୍ଵିଣୀ ସମ୍ମତା)
**212/212212/212**

by L Kabi 202501151815

## ମୋହମାୟା 034

ସ୍ତ୍ରୀପୁତ୍ରକନ୍ୟା ଯଦି ମୋହ ମାୟା
ସଂସାର ମିଥ୍ୟା ପରିବାର ମିଥ୍ୟା ।
ତେବେ ତ ମିଥ୍ୟା ପତି ତାତ ମାତା
ଏ ସର୍ବମିଥ୍ୟା ଭଗବାନ୍ କି ଭାବେ ॥

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ,)
221/221/121+22

by L Kabi 202501151223

## ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ (ଅର୍ଦ୍ଧସମ ମାତ୍ରିକ) ଛନ୍ଦରେ:-

ଅଶୌଚୋଚ୍ଛିଷ୍ଟ
ଛୁଆର ଅଇଁଠା-କଣ୍ଟା
ଛୁଆଙ୍କି ଜ୍ୱାଇଁ ବାବୁର
ଧରିବାଟା ମନା ପାଠେ
ଯେ ଧରେ ମୂଢ ନିଶ୍ଚୟ ॥ 315

ଗୋଡ ସଂଖ୍ୟା
ଗାଈର ଚାରିଟା ଗୋଡ
ନ ଜାଣିଛି କିଏ ଛୁଆ
ଲେଖି ଏହି ଛୁଆଙ୍କାନ
କବିତା କହିବା କିଆଁ ॥ 316

ଯାହା ବିତରିବା ଯୋଗ୍ୟ
ନ ଥିଲେ କିଛି ସେ ପରି
ଖାତା ଯେତେ କଲେ ମୋଟା

ବୃଥା ଲେଖାର ଚାତୁରୀ ॥ 317
L Kabi 202501150001

ମୃତ୍ପିଣ୍ଡ
ଦାହ ଯେଣୁ ହୁଏ ଦେହ
ଶୀର୍ଯ୍ୟ ବୋଲି ଶରୀର ସେ ।
ବିଗୃହୀତ ହୁଏ ବୋଲି
ନାମ ତାହାର ବିଗ୍ରହ ॥ 318
LKabi 202501172238

ତୀର୍ଥ
ଅନ୍ୟ ସଙ୍ଗେ ଯିବା ମାର୍ଗେ
ଫେରିବାରେ ପରସ୍ପରେ ।
ପ୍ରବୃତ୍ତ କଳହେ ଭକ୍ତେ
ନିଶ୍ଚେ ସେ ତୀର୍ଥ ନିଷ୍ଫଳ ॥ 319
LK 202501181543

ପ୍ରେମ ଓ ମୂର୍ଖ
ରାଧାକୃଷ୍ଣଙ୍କର ପ୍ରେମେ
ଯଥେଚ୍ଛ କର ଉତ୍ସବ ।
ନିଜେ ପ୍ରେମ କଲେ ପାର୍କ୍‌ରେ
ମୂର୍ଖ ଧର୍ମାନ୍ଧ ମାରିବେ ॥ 320
LK 202501182248

ବିଦେଶୀ ପର୍ବ
ପେଣ୍ଟ୍‌ସାର୍ଟ୍ ପିନ୍ଧି ଖଦୀ ତେଜି
କମୋଡେ ହଗି ନିତ୍ୟଶଃ ।
ଦିଅନ୍ତି ଅନ୍ୟକୁ ଜ୍ଞାନ -
ବିଦେଶୀ ପର୍ବ ପାଳନା ॥ 321
LKabi 202501191519

# 12


(+91) 7978 680 712

ବାର୍ଣ୍ଣିକ ଛନ୍ଦ - ଇନ୍ଦ୍ରବଜ୍ରା, ଶାର୍ଦ୍ଦୂଳବିକ୍ରୀଡିତମ୍, ବସନ୍ତତିଳକା, ମାଳିନୀ ସରୋଜାବଳୀ ,ସ୍ରଗ୍ବିଣୀ ଓ ମାତ୍ରିକ ଛନ୍ଦ - ଗୀତି-ଆର୍ଯ୍ୟା, ଅନୁଷ୍ଟୁପ୍